# ନୂଆ କିରଣ

ଲେଖିକା

ସବିତା ଭୋଇ



ଲିପିକା

ନିଜିଗଡ଼ କୁରୁଝି, ହରିରାଜପୁର

ଜଟଣୀ, ପୁରୀ-୭୫୨୦୫୦



# ନୂଆ କିରଣ


ଲେଖିକା

**ସବିତା ଭୋଇ**

ଏମ୍.ଏ.ବି.ଇଡି.

ସରକାରୀ ଉ.ପ୍ରା. ବିଦ୍ୟାଳୟ

ଦମକିପାଲି, ପାଟଣାଗଡ, ଜି:ବଲାଙ୍ଗିର-୭୬୭୦୨୫

ମୋ - ୯୭୭୭୬୦୧୪୪୨



ପ୍ରକାଶକ

**ଲିପିକା**

ନିଜିଗଡ଼ କୁରୁଖି, ହରିରାଜପୁର,

ଜଟଣୀ, ପୁରୀ-୭୫୨୦୫୦

ପ୍ରଚ୍ଛଦ ଓ ଅଳଙ୍କରଣ

**ଅନ୍ତର୍ଯ୍ୟାମୀ ମେହେର**

ମୁଦ୍ରଣ

**ମିଡିଆ ପ୍ରେସ୍**

ଅଶୋକ ନଗର, ଭୁବନେଶ୍ୱର-୯

ପ୍ରଥମ ପ୍ରକାଶ

**ଗୁରୁ ଦିବସ-୨୦୧୧**

ମୂଲ୍ୟ : ୩୦/-


## NUAKIRANA


Writer

**Sabita Bhoi**



Publisher

**LIPIKA**

Nizigarh Kurukhi, Harirajpur,

Jatni, Puri - 752 050

Cover Art & Illustration

**Antaryami Meher**

First Editon

**Guru Divas - 2011**

Price : **Rs. 30/-**




ସନ୍ନି, ସୌମ୍ୟା, ଶ୍ୱେତା

ଓ ସୋମ୍ ହାତରେ

– *ସବିତା*

ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ଶିଶୁ
କବିତା ଗୁଡିକର ସଂକଳନ ହେଉଛି
"ନୂଆ କିରଣ" ।
ଉକ୍ତ ପତ୍ରିକାର ସଂପାଦକ ମାନଙ୍କୁ
କୃତଜ୍ଞତା ଜଣାଉଛି ।
"ନୂଆ କିରଣ" ର କବିତା ଗୁଡ଼ିକ
ପିଲାମାନଙ୍କ ହୃଦୟକୁ ଛୁଇଁ ପାରିଲେ
ମୋର୍ ଶ୍ରମ ସାର୍ଥକ ମଣିବି ।

*- ସବିତା ଭୋଇ*



ସୁଶ୍ରୀ ସବିତା ଭୋଇଙ୍କ କବିତା ପୁସ୍ତକ 'ନୂଆ କିରଣ'ର ପାଣ୍ଡୁଲିପି ପଢୁପଢୁ ଶୈଶବ କାଳର ସୁମଧୁର ସ୍ମୃତି ସବୁ ମନେ ପଡିଗଲା । କିଛି ସମୟ ପାଇଁ ମୁଁ ଶିଶୁଟିଏ ହୋଇ ଘୂରି ବୁଲିଲି ଫୁଲରୁ ଫୁଲକୁ ଉଡି ବୁଲୁଥିବା ରଙ୍ଗରଙ୍ଗିଆ ପ୍ରଜାପତିଙ୍କ ପଛରେ । ଆକାଶରେ ମୋତି ଭଳି ବିଛାଡି ହୋଇ ପଡିଥିବା ଜକଜକିଆ ତାରା ଗୁଡିକୁ ଗଣିବା ପାଇଁ ଆଙ୍ଗୁଠି ସବୁ ଗୋଟିକ ପରେ ଗୋଟିଏ ସ୍ୱତଃ ନତ ହୋଇଗଲେ । ଆଉ ମୁହଁରୁ ଫୁଟି ଉଠିଲା ଦରୋଟି ହସ, କେତେ କ'ଣ ସ୍ମୃତିର ଚିତ୍ରପଟ ସବୁ । ବାସ୍ତବରେ କବୟିତ୍ରୀ ଏହି ପୁସ୍ତକରେ ସ୍ଥାନିତ ପ୍ରତିଟି କବିତାରେ ଶିଶୁମାନଙ୍କ ହସ ଖେଳର ଦୁନିଆକୁ ଏଭଳି ରୂପଦେଇଛନ୍ତି ଯେଉଁ ଗୁଡିକୁ ପଢ଼ିବାବେଳେ ଶିଶୁଟିଏ ମନେ କରିବ ସତେ ଯେମିତି ତା'ର ପ୍ରତିଟି ସ୍ୱପ୍ନ ଏଥିରେ ରୂପାୟିତ ହୋଇଛି । ବିଷୟ ଚୟନ ଏବଂ ଉପସ୍ଥାପନା ଦିଗରେ କବୟିତ୍ରୀ ବେଶ ଯତ୍ନବାନ୍ । ସକାଳର ନାଲି ସୂରୁଯ ଉଦୟନ ଠାରେ ଆରମ୍ଭ କରି ବିଲମାଳ, ପାହାଡ, ପର୍ବତ, ନଦୀ, ଝରଣା, ଦେବାଳୟରେ ପୂଜା ଅରଚନା, ଯାନିଯାତରା, ଭାରତ ମାଆର ବନ୍ଦନା ପର୍ଯ୍ୟନ୍ତ ସ୍ନେହ ମମତା ବାର୍ତ୍ତା ବହନ କରୁଥିବା ଏହି କବିତା ସବୁ ଶିଶୁ ଭିତରେ ଲୁଚି ରହିଥିବା ପ୍ରତିଭାକୁ ଜାଗରୂକ କରିବା ଦିଗରେ ସତତ ପ୍ରୟାସୀ । ଏତଦ୍‌ବ୍ୟତୀତ ପ୍ରତି କବିତାରେ ଶିଳ୍ପୀ ଅନ୍ତର୍ଯ୍ୟାମୀ ମେହେରଙ୍କ ତୂଳୀର ସ୍ପର୍ଶରେ ଦୃଶ୍ୟମାନ୍ ହେବା ସଙ୍ଗେ ସଙ୍ଗେ ଅତ୍ୟନ୍ତ ପ୍ରାଣବନ୍ତ ହୋଇ ଉଠିଛି । ଆଶା ଏବଂ ବିଶ୍ୱାସ ଏହି ପୁସ୍ତକଟି ସବୁ ଦୃଷ୍ଟିରୁ ଶିଶୁ ପାଠକ ପାଠିକାଙ୍କ ମନକୁ ଛୁଇଁ ପାରିବ ।

କବୟିତ୍ରୀଙ୍କ ପ୍ରୟାସ ସଫଳହେଉ । ଆହୁରି ଆହୁରି କବିତା ପସରାନେଇ ପ୍ରତିଟି ଶିଶୁ ପାଇଁ ସେ ସ୍ମରଣୀୟ ହୋଇ ରୁହନ୍ତୁ - ପ୍ରଭୁଙ୍କ ନିକଟରେ ଏତିକି କାମନା ।

**ଡକ୍ଟର ରମେଶ ପତ୍ରୀ**
**ସଦସ୍ୟ**
**ଓଡ଼ିଶା ସାହିତ୍ୟ ଏକାଡେମୀ**
**ତରଭା, ସୁବର୍ଣ୍ଣପୁର**

**ଗୁରୁଦିବସ ୨୦୧୧**



# ସୂଚୀ ପତ୍ର




ଆମେ ନୂଆଶତାବ୍ଦୀର ନୂଆ କିରଣ
ଆମେ ନୂତନ ଯୁଗର ନୂଆ ତପନ
ଆମେରେ ସୂରୁଯ ଢ଼ାଳିବୁ ମୁରୁଜ
ଆମେ ମହାତେଜ ହୋଇଅଛୁ ସଜ
ତମସା କରିବୁ ଅବସାନ ।

ଆମେ ଝିକିମିକି ଗଗନର ତାରା
ଆମେ ଟିକିଟିକି ଧରଣୀର ଚାରା
ଆମେ କୁଳୁକୁଳୁ ଟିକି ନଈ ଧାରା
ଆମେ କୁହୁକୁହୁ ତାନ ମଧୁ ଝରା
ଆମରି ପରଶେ ମାଟିମାଆ ହସେ
ଭେଦଭାବ ଦୂର ଆମରି ସୁବାସେ
ଆମେ ସବୁ ସୁନେଲୀ ସପନ ।

ଆମେ ସୁଲୁ ସୁଲୁ ମଉସୁମୀ ବାଆ
ବାହିବୁ ଆଗାମୀ ଭାରତର ନାଆ
ଆମେ ପରା ପୁଣ୍ୟ ଜାହ୍ନବୀର ଧାରା
ଶ୍ୟାମଳିମା କରି ଯିବା ସାରା ଧରା
ଆମେ ମହାବଳ କିଏ ଆମ ତୁଲ
ଆମେ ଟିକି ଫୁଲ ମୂଲ ଯା' ଅମୂଲ
ରଖିବୁ ଭାରତ ଯଶ ଓ ମାନ । ❑

(୨୦୦୭ ଟିକି କାଇଁଚ ବାର୍ଷିକୋତ୍ସବରେ ପଠିତ)

# କଳା ଠାକୁର



ଛୋଟ ଏଇ ଦେହ ପୁଣି
ଟିକି ମନ ମୋର
ଏ ଟିକି ଅନ୍ତରେ ପୂଜେ
ମୂରତି ତୁମର
ଟିକି ବୋଲି ମୋତେ ତୁମେ
ଭୁଲିଯିବ ନାଇଁ
ତୁମ ନାମ ସଦା ଗାଏ ହେ କଳା ଠାକୁର ।
ଛନ୍ଦ କପଟ ଜାଣେନା
ଟିକି କଢ଼ି ମୁହିଁ
ଫୁଲ ହୋଇ ଫୁଟିଯିବି
ତୁମ ଛୁଆଁ ପାଇ
ବିତରିବି ସଂସାରରେ
ମହକ ମୋହର



ତୁମରି କରୁଣା ଧାରେ
ଦୂରେଇ ଅନ୍ଧାର
ଆଲୋକର ଜ୍ୟୋତି ସାଜିବି ମୁଁ ନିତି
ସବୁରି ମଙ୍ଗଳ ପାଇଁ ଜୀବନ ମୋହର ।
ହିଂସା ଦ୍ୱେଷ ପଥ ଠାରୁ
ରଖ ମୋତେ ଦୂର
ଭେଦଭାବ ଉଚ୍ଚନୀଚ
ଭୁଲି ଏ ଅନ୍ତର
ନିରିମଳ ମନେ ଦୁଃଖୀ
ଜନ ସେବା କରି
ସତ୍ୟଧର୍ମ ପଥ ସଦା
ଜୀବନେ ଆଚରି
ହେ ଜଗତ ବନ୍ଧୁ ପ୍ରଭୁ କୃପାସିନ୍ଧୁ
ପାଖେ ପାଖେ ଥିବ ଶୁଣି ଗୁହାରି ମୋହର । ◻

(୨୦୦୯ - ରାଉତମୁଣ୍ଡା, ଧନୁଯାତ୍ରାରେ ପଠିତ)

# ଜଳାଇ ଆଲୋକ ଦୀପ

ଭାରତ ମାତାର ପବିତ୍ର ଚରଣ
ଛୁଇଁ କରିବା ଶପଥ
ଅନ୍ଧକାର ଫେଡି ଜଳାଇବା ପାଇଁ
ଏକତା ଆଲୋକ ଦୀପ ।
ଜାତି ବର୍ଣ୍ଣ ଧର୍ମ ଭେଦଭାବ ନେଇ
ମାଆକୁ ଦେବାନି ବ୍ୟଥା
ସାରା ଦୁନିଆରେ କୀରତି ଆଣିବା
ଉଚ୍ଚେ ରଖି ମାଆ ମଥା ।



ଦେବାନି ଆଘାତ କୁସଙ୍ଗରେ ପଡି
ଜନନୀ ଆଖିରେ ଲୁହ
ସେନେହ ମମତା ବାଣ୍ଟିବାରେ ଆମେ
ପୋଛିବା ଯେତେକ କୋହ ।
କୋଟିଏ ଓଠରେ ହସ ଫୁଟାଇଲେ
ସେଇତ ମାଆର ସୁଖ
ଝରିବନି ଲୁହ କାହାରି ଆଖିରୁ
ଭୋଗିବେନି କେହି ଦୁଃଖ ।
ସେବା ମନୋଭାବ ନେଇ ହୃଦୟରେ
କରିଯିବା ପ୍ରତି କାମ
ପ୍ରତିଟି ଅନ୍ତର ଆଲୋକିତ କରି
ପୋଡିଦେବା ସ୍ୱାର୍ଥ ଆମ । ❑

(ଓଡ଼ିଶା ଭାସ୍କର - ୧୫.୪.୦୭)

# ଦୁନିଆ ପାରିବା ଜିଣି

ବାପା ମାଆ ସଦା ସେନେହ ସରାଗେ
ମମତା ଦିଅନ୍ତି ବୁଣି
ସନ୍ତାନର ହିତ ସଦା ଚାହୁଁଥାନ୍ତି
ପାଳନ୍ତି ଆଦରେ ପୁଣି ।
ନିଜେ ଦୁଃଖ ସହି ପିଲାର ଓଠରେ
ନିରିମଳ ହସ ଢ଼ାଳି
ରୋଗର ସମୟେ ପାଖେ ପାଖେ ରହି
ଆଶିଷ ଦୀପାଳୀ ଜାଳି ।



ରାଗ ରୋଷ ଦୋଷ ସବୁ ଭୁଲି ଯାଇ
ହସରେ ନିଅନ୍ତି କିଣି
କ୍ଷମାଶୀଳ ସଦା ବାପା ମାଆ ପରା
ତାଙ୍କଠାରେ ଚିରଋଣୀ ।
ତାଙ୍କରି ଆଶିଷ ସଦା ଝରୁଥିବ
ଭଲକାମ କଲେ ଜାଣି
ବାପା ମାଆ ସଦା ଖୁସି ରହିଥିଲେ
ଦୁନିଆ ପାରିବା ଜିଣି । ❑

(ଅଗ୍ନିଶିଖା - ୮.୬.୨୦୦୮)

# ଘୂରାଅ ଟିକେ ମଥା



ଆମ୍ବ ଗଛର ପାଖକୁ ଆସି
ପଚାରି ଦେଲା ଟିକି
କେମିତି ହେଲା ଗଛରେ ଫଳ
କିଏ ସେ ଦେଲା ରଖି ।
ଗଛହେ ତମେ ଯାଉନ ପଡି
କିଏ ସେ କଲା ଠିଆ
ନାଲି ନ ହୋଇ ତମ ପତର
ସବୁଜ ହେଲା କିଆଁ ?
ଅଧେକ ଆମ୍ବ ଲାଗଇ କାହିଁ
ପାଟିକୁ ଏତେ ଖଟା
ଏକା ଲାଗେନି ଆମ୍ବ ଯେତେକ
କେତେକ ଲାଗେ ମିଠା ।



ଟିକିର କଥା ଗଛଟି ଶୁଣି
କହିଲା ଖୁସି ହୋଇ
ଜାଣିବ ଯଦି ମୋର କାହାଣୀ
ପଢ଼ଟି ମନ ଦେଇ ।
କେମିତି ଚେର ମାଟିକୁ ବାନ୍ଧି
ହେଲି ଏମିତି ଠିଆ
ଡାଳ ପତର ଫୁଲ ଫଳର
କଥା ଲାଗିବ ନୂଆ ।
ପଢ଼ିଲେ ପାଠ ଜାଣିବ ସବୁ
କେତେ ଦୁନିଆ କଥା
କିଏ ଗଢ଼ିଲା କେମିତି ହେଲା
ଘୂରାଅ ଟିକେ ମଥା । ❑

(ପ୍ରଜାତନ୍ତ୍ର - ଅକ୍ଟୋବର ୨୦୦୭)

# ସୁନା କିଆରି

ଧାନ କିଆରି ସେ ସୁନା କିଆରି
ସୁରୁଜ ଉଇଁଲେ ବଢ଼ଇ ଶିରୀ ।

ଶୀତର ପରଶେ ଝରେ ଶିଶିର
ଶିଶିର ନୁହେଁ ତ ମୁକୁତା ହାର ।

ଯେଉଁଠି ପଡଇ ଦୁଇ ନୟନ
କିଆରି ଫୁଟାଏ ସୁନା କୁସୁମ ।

କୃଷକ ଭାଇର ଏ ଯାଦୁଗରୀ
ସବୁରି ହୃଦୟ ନେଉଛି ହରି ।

ଲକ୍ଷ୍ମୀମାତା ଆଗମନ କରନ୍ତି
ଦୁଃଖ ଯେତେ ଥାଏ ହରି ନିଅନ୍ତି । ❑

(ପ୍ରଜାତନ୍ତ୍ର - ଅକ୍ଟୋବର ୨୦୦୭)



# ହେବା ଏକ ମେଳ

କୁନି କୁନି ପିଲା ସବୁ, ହେବା ଏକ ମେଳରେ
କିଏ ହେବ ଜଗତରେ, ଆମ ସମତୁଲରେ ।

ନାହିଁ ଭେଦଭାବ ତିଳେ, ଆମ ମନ ଭିତରେ
ମିଳିମିଶି କାମ କରୁ, ସଭିଙ୍କର ହିତରେ ।

ଜାତି ଧରମରେ ବନ୍ଧା ନାହିଁ ମନ କାହାରି
ସେନେହ ମମତା ଯହିଁ ଆମେ ପରା ତାହାରି ।

ଆମରି ପରଶ ପାଇ ହସି ଉଠେ ଧରଣୀ
ଲେଖିଯିବୁ ଏ ମାଟିରେ ଏକତାର କାହାଣୀ ।

ଅମୃତର ଧାରା ଆସ ଝରାଇବା ସବୁଠି
ସାଜିବା ପ୍ରଦୀପ ଶିଖା ଅନ୍ଧକାର ଯେଉଁଠି । ❑

(ଟିକି କାଇଁଚ - ଏପ୍ରିଲ-ଜୁନ ୨୦୦୮)



# ଖେଳିବା ହୋଲି

ଶୀତଋତୁ ଏବେ ଗଲାଣି ଚାଲି
ଆସିଲା ଫଗୁଣ ଗାଏ କୋଇଲି
ଆସରେ ପିଲାଏ ଖେଳିବା ହୋଲି
ଭେଦଭାବ ଯେତେ ଅନ୍ତରୁ ଭୁଲି ।



ନାନା ଜାତି ରଙ୍ଗ ପାଣିରେ ଗୋଳି
ସାଙ୍ଗସାଥୀ ଦେହେ ଦେବାଟି ବୋଳି
ନାଚିନାଚି ସାରା ଗାଆଁଟା ବୁଲି
ମନରୁ କଳୁଷ କାଳିମା ଭୁଲି
ଫଗୁ ରଙ୍ଗ ହୋଇ ଦେହରେ ବୋଳି
ଏକତା ର ଦୀପ ଦେବାରେ ଜାଳି । ❑

(ଉନ୍ମେଷ- ଜାନୁୟାରୀ-ମାର୍ଚ୍ଚ ୨୦୦୯)

# ରଖିବୁ ମାନ

ଏ ସାରା ଦୁନିଆ ଆମ ଏକ ଉଦ୍ୟାନ
ସେ ଉଦ୍ୟାନେ ଆମେ ଜାତିଜାତି କୁସୁମ
ଫୁଟିଯିବୁ, ବିତରିବୁ, ସୁବାସ ଆମ ।

ହସି ହସାଇବୁ ଏଇ ସାରା ଧରଣୀ
ଜଗତରେ ଲେଖିଯିବୁ ନୂଆ କାହାଣୀ
ଆମ ଶକ୍ତି, ଆମ ନୀତି, ଶାନ୍ତି ସନ୍ଧାନ ।

ଧୂପଭଳି ଜଳିଆମେ କରିବୁ କାମ
ଭଲକାମେ କିଣିନେବୁ ସବୁରି ମନ
ଢ଼ାଳିରକ୍ତ, ହେବୁ ଶକ୍ତ, ରଖିବୁ ମାନ । ❑

(ନବ ଆକାଶର ଚନ୍ଦ୍ରମା - ଜାନୁୟାରୀ-ମାର୍ଚ୍ଚ ୨୦୦୮)



# ଖେଳିବା ହୋଲି

ଶୀତଋତୁ ଏବେ ଗଲାଣି ଚାଲି
ଆସିଲା ଫଗୁଣ ଗାଏ କୋଇଲି
ଆସରେ ପିଲାଏ ଖେଳିବା ହୋଲି
ଭେଦଭାବ ଯେତେ ଅନ୍ତରୁ ଭୁଲି ।



ନାନା ଜାତି ରଙ୍ଗ ପାଣିରେ ଗୋଳି
ସାଙ୍ଗସାଥୀ ଦେହେ ଦେବାଟି ବୋଳି
ନାଚିନାଚି ସାରା ଗାଆଁଟା ବୁଲି
ମନରୁ କଲୁଷ କାଳିମା ଭୁଲି
ଫଗୁ ରଙ୍ଗ ହୋଇ ଦେହରେ ବୋଳି
ଏକତା ର ଦୀପ ଦେବାରେ ଜାଳି । ▫

(ଉନ୍ମେଷ- ଜାନୁୟାରୀ-ମାର୍ଚ୍ଚ ୨୦୦୯)

# ରଖିବୁ ମାନ

ଏ ସାରା ଦୁନିଆ ଆମ ଏକ ଉଦ୍ୟାନ
ସେ ଉଦ୍ୟାନେ ଆମେ ଜାତିଜାତି କୁସୁମ
ଫୁଟିଯିବୁ, ବିତରିବୁ, ସୁବାସ ଆମ ।

ହସି ହସାଇବୁ ଏଇ ସାରା ଧରଣୀ
ଜଗତରେ ଲେଖିଯିବୁ ନୂଆ କାହାଣୀ
ଆମ ଶକ୍ତି, ଆମ ନୀତି, ଶାନ୍ତି ସନ୍ଧାନ ।

ଧୂପଭଳି ଜଳିଆମେ କରିବୁ କାମ
ଭଲକାମେ କିଣିନେବୁ ସବୁରି ମନ
ଢ଼ାଳିରକ୍ତ, ହେବୁ ଶକ୍ତ, ରଖିବୁ ମାନ । ❑

(ନବ ଆକାଶର ଚନ୍ଦ୍ରମା - ଜାନୁୟାରୀ-ମାର୍ଚ୍ଚ ୨୦୦୮)



# ଖେଳିବା ହୋଲି

ଶୀତଋତୁ ଏବେ ଗଲାଣି ଚାଲି
ଆସିଲା ଫଗୁଣ ଗାଏ କୋଇଲି
ଆସରେ ପିଲାଏ ଖେଳିବା ହୋଲି
ଭେଦଭାବ ଯେତେ ଅନ୍ତରୁ ଭୁଲି ।



ନାନା ଜାତି ରଙ୍ଗ ପାଣିରେ ଗୋଳି
ସାଙ୍ଗସାଥୀ ଦେହେ ଦେବାଟି ବୋଳି
ନାଚିନାଚି ସାରା ଗାଆଁଟା ବୁଲି
ମନରୁ କଳୁଷ କାଳିମା ଭୁଲି
ଫଗୁ ରଙ୍ଗ ହୋଇ ଦେହରେ ବୋଳି
ଏକତା ର ଦୀପ ଦେବାରେ ଜାଳି । ◻

(ଉନ୍ମେଷ- ଜାନୁୟାରୀ-ମାର୍ଚ୍ଚ ୨୦୦୯)

# ରଖିବୁ ମାନ

ଏ ସାରା ଦୁନିଆ ଆମ ଏକ ଉଦ୍ୟାନ
ସେ ଉଦ୍ୟାନେ ଆମେ ଜାତିଜାତି କୁସୁମ
ଫୁଟିଯିବୁ, ବିତରିବୁ, ସୁବାସ ଆମ ।

ହସି ହସାଇବୁ ଏଇ ସାରା ଧରଣୀ
ଜଗତରେ ଲେଖିଯିବୁ ନୂଆ କାହାଣୀ
ଆମ ଶକ୍ତି, ଆମ ନୀତି, ଶାନ୍ତି ସନ୍ଧାନ ।

ଧୂପଭଳି ଜଳିଆମେ କରିବୁ କାମ
ଭଲକାମେ କିଣିନେବୁ ସବୁରି ମନ
ଢ଼ାଳିରକ୍ତ, ହେବୁ ଶକ୍ତ, ରଖିବୁ ମାନ । ❑

(ନବ ଆକାଶର ଚନ୍ଦ୍ରମା - ଜାନୁୟାରୀ-ମାର୍ଚ୍ଚ ୨୦୦୮)



# ଚିକି ନୁହେଁ ଚଗଲି



ଚୂନି ଚୂନି କରି ଦେଲା
ପଲକରେ ବହିଟି
ତଥାପି ଚଗଲି ନୁହେଁ
ଚିକି ମାମା ସୁନାଟି ।
ଚୂନା ଚୂନା ଚକଖଡି
କିଏ କଲା ଏମିତି
ଚୁପଚାପ ଚଉକିରେ
ବସି ଚାହେଁ କେମିତି ।

କାଚ ଚୁଡି ମାଆଙ୍କର
ଚିକି ଦେଲା କଚାଡି
ଚୂନା ଚୂନା ହୋଇ ସବୁ
ପଡ଼ିଲା ସେ ଛିଞ୍ଚାଡ଼ି ।
ଆଖି ଦୁଇ ମୁଦି ପୁଣି
ଟିକେ ଟିକେ ଚାହୁଁଛି
ମାଆ ବାପାଙ୍କ ସେନେହ
ଚୁମାଟିଏ ମାଗୁଛି ।
ଚର ଚର ଚିରିବନି
କେବେ ଖାତା ବହିଟି
ଚିକି ପାଇଁ ଚକମକ
ଲାଗୁଥିବ ଘରଟି ।

(ବରଗଡ଼ ଧନୁଯାତ୍ରା- ୨୦୦୭ରେ ପଠିତ)

# ଜୀବନ ଦୀପଜାଳି

ଫୁଲ ଯେମିତି ସୁବାସ ତା'ର
ଜଗତେ ଦିଏ ଢ଼ାଳି
ଦୀପ ଯେମିତି ଆଲୋକ ଦେଇ
ଯାଏଟି ଜଳି ଜଳି ।
ଆମେ ସେମିତି କରିବା କାମ
ଆପଣା ସ୍ୱାର୍ଥ ଭୁଲି
ଦୁଃଖୀ ଜନଙ୍କ ସେବାରେ ଆମେ
ନିଜକୁ ଦେବା ବଳି ।



କୋମଳ ଭାବ ହୃଦେ ଭରିବା
ଯେମିତି ଫୁଲ କଳି
ଘୃଣା, ଦ୍ୱେଷକୁ ମନରୁ ତେଜି
ସଭିଙ୍କୁ ନେବା ତୋଳି ।
ମାଟି ମାଆର ସେବା କରିବା
ନ ଯିବା କେବେ ଭୁଲି
ଜଗତ ହିତ ସାଧନ ପଥେ
ଜୀବନ ଦୀପ ଜାଳି । ❑

(ପଶ୍ଚିମାଞ୍ଚଳ - ୧୭.୩.୨୦୦୫)

# ସଜାଡି ରଖିଥିଲେ




ଛୁଟି ସରିଲା ସ୍କୁଲ ଖୋଲିଲା
ଚାଲିଲା ବହି ଖୋଜା
କୁନା ଖୋଜୁଛି କଲମ ଖାତା
ମିଳୁନି ଗୋଟେ ମୋଜା ।
ସାଙ୍ଗ ସାଥୀ ତା ଡାକ ଛାଡନ୍ତି
ହେଲେଣି ତରତର
କୁନା ବେଲ୍ଟ ରହିଲା କାହିଁ
ଆଖିରେ ଲୁହଧାର ।



ମା' ଉପରେ ହୋଇ ସେ ଖପ୍‌ପା
କରଇ ବଡ ପାଟି
ମିଳୁନି ଖାତା ରାଗୁଛି କୁନା
ଖୋଜଇ ଗୋଟିଗୋଟି ।
ମାଆ କହିଲେ ମିଛରେ ସିନା
କରୁଛୁ ବାବୁ ରୋଷ
ନିଜ ଜନିଷ ଅସନା ରଖି
ପରକୁ ଦେଉ ଦୋଷ ।
କୁନା ଭାବିଲା କଥା ତ ସତ
ନିଜ ଜିନିଷ ଯେତେ
ସଜାଡି ଥିଲେ ହଇରାଣ ସେ
ହୋଇ ନଥାନ୍ତା ଏତେ । ❑

(ଅକ୍ଷରେ - ସେପ୍ଟେମ୍ବର-ନଭେମ୍ବର ୨୦୦୯)

# ପ୍ରାଣୀ ଜଗତର ମିତ



ଗଛଟିଏ ମୁହିଁ ଗଛଟିଏ
ଶୀତଳ ପବନ ଭରିଦିଏ
କେତେ ଫୁଲଫଳ ଖାଇବାକୁ ଦିଏ
କେହି ହେଲେ ମୋର ପର ନୁହେଁ ।

ଜଳକଣା ଛାଡେ ମୋ ପତର
ମେଘ ଢ଼ାଳେ ପାଣି ଧାରଧାର
ସାରା ଦୁନିଆକୁ ସୁଖଶାନ୍ତି ଦେଇ
ଗରଳକୁ କରେ ଆପଣାର ।

ମୋ ପାଇଁ ଝରଣା ଗାଏ ଗୀତ
ହସଇ ବରଷା ଆସେ ଶୀତ
ଋତୁ ପରେ ଋତୁ ଧରା ପୃଷ୍ଠେ ବିଜେ
ପ୍ରାଣୀ ଜଗତର ଅଟେ ମିତ ।

ଆସବାବ ଘର ଆଲମାରି
ଜାଳେଣିରେ ହୁଏ ଦରକାରୀ
ଝଡ ବତାସଠୁ ମରୁଡିଯାଏ ମୁଁ
ଅହରହ ସାଜେ ହିତକାରୀ । ❑

(ପ୍ରଜାତନ୍ତ୍ର - ୨୦୦୮)

# ହୃଦରୁ ଝରୁ ପ୍ରେମ

ହିନ୍ଦୁ ମୁସୁଲିମ ଶିଖ୍ ଖ୍ରୀଷ୍ଟିୟାନ
ହେଉ ସେ ବୌଦ୍ଧ ଜୈନ
ଯେଉଁ ଧରମେ ଯିଏ ବା ଥାଉ
ହୃଦରୁ ଝରୁ ପ୍ରେମ ।

ପୁଣ୍ୟ ଭାବନା ଦୃଷ୍ଟିରେ ବାସ
ନୂତନ ସୃଷ୍ଟି ପାଇଁ
କ୍ଷମାଶୀଳଟି ହେଉ ମଣିଷ
ଅହିଂସା ପଥ ନେଇ ।



ସତ୍ୟ ଶାନ୍ତିଠୁଁ ଦୟା କରୁଣା
ଅନ୍ତରେ କରୁ ବାସ
ଏକତା ଆଉ ସମତା ଯହିଁ
ଝରଇ ତହିଁ ହସ ।
ସତ୍ୟର ପଥେ ଚାଲିବା ପାଇଁ
ଶିଖାଏ ପ୍ରତି ଧର୍ମ
ସବୁ ଧରମେ ସେବା ଗୁଣଟି
ଅଟେ ମହତ ପଣ । ❑

(କଳାମାଣିକ - ଡିସେମ୍ବର ୨୦୦୮)

# ଆଶାର ଆଲୋକ

ଆମେ ଟିକିଟିକି ଶିଶୁ ଆଶାର ଆଲୋକ
ଦୁଃଖ ଅବସାଦେ ଆମେ ଶାନ୍ତିର ବାହକ ।

ଓଠର ଦରୋଟି ଭାଷା ଲଗାଏ କୁହୁକ
ସେନେହ ପରଶେ ଫୁଟି ଢ଼ାଳିବୁ ମହକ ।



ଆମ ଦେଶ ଚଳାପଥେ ନୂତନ ପଥିକ
ଆମେ ଭବିଷ୍ୟତ ମାଟି ମାଆର ରକ୍ଷକ ।

ଆଜି ସିନା ଟିକି ଆମେ କାଲି ନାଗରିକ
ମାଆର ଆଶା ଭରସା ଆମେରେ ସୈନିକ । ❑

(ଟିକି କାଇଁଚ - ଜାନୁୟାରୀ-ମାର୍ଚ୍ଚ ୨୦୦୯)

# ନୀରୋଗ ଜୀବନ ତହିଁ



ଗଛଲତା ଅଛି ଯହିଁ
ନୀରୋଗ ଜୀବନ ତହିଁ
ନାନାଜାତି ଫୁଲ ଫୁଟି ଚଉଦିଗ
ମହକରେ ଯାଏ ଛୁଇଁ ।

ଗଛଟେ ଲଗାଏ ଯିଏ
କୋଟି ପୁଣ୍ୟ ପାଏ ସିଏ
ମଣିଷ ଚଢ଼େଇ କୀଟଠୁ ପତଙ୍ଗ
ସଭିଙ୍କୁ ସେ ସେବା ଦିଏ ।

ଭୋକିଲାକୁ ଦିଏ ଫଳ
ତୃଷିତ ପାଟିରେ ଜଳ
ସବୁଜ ଗଛର ଛାଇ ଟିକେ ପାଇ
ବଢ଼ଇ ମନର ବଳ ।

ଉପକାରୀ ବନ୍ଧୁ ସେଇ
ଜାଳେଣି ଯୋଗାଏ ରହି
ଅମ୍ଳଜାନ ଦେଇ ଜୀବନ ରଖଇ
ଅଙ୍ଗାରକାମ୍ଳକୁ ନେଇ ।

ଝଡ ତୋଫାନର ବେଳେ
ଖରା ବେଳେ ଥକିଗଲେ
ପ୍ରତିଟି ବିପଦେ ଗଛ ହୁଏ ସାହା
ଜୀବନରେ କାଳେ କାଳେ । ❑

(ଅଗ୍ନିଶିଖା-୨୦୦୯)

# ନ ଯାଉ କା' ପରାଣ



ଅନ୍ଧକାର ଯେଉଁଠି
ଛିଡା ହେଉ ସେଇଠି
ଆଲୋକର ଧାରା ଢ଼ାଳି
ଆସୁ ପୁଣି ଲେଉଟି ।
ହିଂସା ଦ୍ୱେଷ ଭୁଲେଇ
ସୁଖଶାନ୍ତି ଝରେଇ
ରାଗ ଅହଂକାର ଭୁଲି
ନେଉ ଆମେ କୋଳେଇ ।
ଭେଦଭାବ ଦୂରେଇ
ଉଚ୍ଚନୀଚ ଏଡାଇ
ଏକତାର ଡୋରେ ବାନ୍ଧି
ହସ ଦେଉ ଫୁଟେଇ ।
ଭୋକ ଶୋଷ ଯେଉଁଠି
ଆମେ ସବୁ ସେଇଠି
ଅଭାବ କଷଣ ଫେଡି
ଆସୁ ପୁଣି ଲେଉଟି ।
ସେବା ଆମ ଧରମ
କରି ଭଲ କରମ
ଆମ ଆଖି ଆଗେ ଦୁଃଖେ
ନ ଯାଉ କା' ପରାଣ । ❑

(ସତ୍ୟସାଇ ବାଳବିକାଶ - ସେପ୍ଟେମ୍ବର ୨୦୦୭)

# ସୁନା ପିଲା

ନିତି ସଅଳ ମାଆ ନ ଡାକି
ଉଠଇ ହସିହସି
ପାଇଖାନାରୁ ଫେରିବା ପରେ
ଦାନ୍ତକୁ ନିଏ ଘଷି ।



ବ୍ୟାୟାମକରେ ନିଇତି କୁନା
ଦେହ ରହିବ ଭଲ
ଖାଇ ସାରିଲେ ପାଠ ପଢ଼ଇ
କିଏ ସେ ତାର ତୁଲ ?
ଲାଗେ ନା କଳି କାହା ସାଥିରେ
ସବୁଠି ଚଳେ ମିଶି
ଗୁରୁଜନଙ୍କ ମାନଇ କଥା
କାନ୍ଦେନା କେବେ ରୁଷି ।



ଆଜିର କାମ ଆଜି କରଇ
ନ ରଖେ ତାକୁ ବାକି
କହନ୍ତି ସର୍ବେ କୁନାଟା ସୁନା
ତା'ଭଲ ଗୁଣ ଦେଖି । □

(ଧ୍ୱନି ପ୍ରତିଧ୍ୱନି ୨୧.୦୨.୨୦୦୭)

# ଶୀତକୁ ନେଲେ ଆଦରି

ହେମନ୍ତ ହାତରେ ଧରଣୀ ନାମରେ
ଶୀତ ଦେଇଥିଲା ପତର
ଶୀତ ଆଗମନେ ଫୁଲଫଳ ମିଶି
ସିଞ୍ଚିଦେଲେ ବାସ ଅତର ।

ଶୀତ ଖୁସି ହୋଇ ପଲକେ ଛୁଇଁଲା
ସେନେହରେ ଗଛ ପତର
ସୂରୁଯ ଅଧିରେ ଢ଼ାଳିଲା ମୁରୁଜ
ଝରି ପଡୁଥିଲା ଶିଶିର ।

ଥିରିଥିରି ବହି କାଲୁଆ ପବନ
ଡାଳ ସବୁ ଦିଏ ହଲାଇ
କିଚିରି ମିଚିରି ଶୁଣାଇଲେ ଗୀତ
ପୁଲକରେ ଯେତେ ଚଢ଼େଇ ।

ଝିଲିମିଲି ହୋଇ ସୁନେଲୀ ରଙ୍ଗରେ
ହସୁଅଛି ଧାନ କିଆରୀ
ପୁନେଇ ପରବ ପଥ ଚାହିଁଛନ୍ତି
ପିଠାପଣା କ୍ଷୀରି ତିଆରି ।

ସୁଏଟର ଟୋପି କମ୍ବଳ ସାଲ ଯେ
ଭିତରୁ ଆସିଲେ ବାହାରି
ସ୍ୱାଗତ ଜଣାଇ ଶୀତକୁ ଆବୋରି
ପଲକରେ ନେଲେ ଆଦରି । ❑

(ପଶ୍ଚିମାଞ୍ଚଳ ୧୦.୧୨.୨୦୦୪)



# ପୁଣ୍ୟଭୂମି ଭାରତ



ଜନ୍ମଭୂମି ମାତୃଭୂମି
ପୁଣ୍ୟ ଭୂମି ଭାରତ
ତା' ଗୌରବ ଇତିହାସ
ସାରାବିଶ୍ୱେ ଚର୍ଚ୍ଚିତ
ଜନ୍ମଭୂମି ଭାରତ ମାତୃଭୂମି ଭାରତ
ପୁଣ୍ୟ ଭୂମି ଭାରତ ।
ଦିନ ଥିଲା ଆଖିଲୁହ
ଢ଼ାଳୁଥିଲା ଜନନୀ
ଫିରିଙ୍ଗିର ଶିକୁଳିରେ
ସାଜିଥିଲା ବନ୍ଦିନୀ
ଜାତି ଧର୍ମ ଭୁଲି ସର୍ବେ
ଫୁଙ୍କି ଏକତା ମନ୍ତ୍ର
ଫାଶି ଖୁଣ୍ଟ ଗୁଳି ଚୋଟ
ସହିକଲେ ସ୍ୱତନ୍ତ୍ର
ଜନ୍ମଭୂମି ଭାରତ ମାତୃଭୂମି ଭାରତ ।

ସାମ୍ୟ ମୈତ୍ରୀ ଏକତାର
କରିଯିବା ବନ୍ଦନା
ସ୍ନେହ ପ୍ରୀତି ସମତାର
ତୋଳି ମଧୁ ମୂର୍ଚ୍ଛନା
ହିଂସା ଦ୍ୱେଷ ଫିଙ୍ଗି ଯିବା
ଏଇ ଆମ ଶପଥ
ମାନବ ଧରମେ ହେବା
ଆମେ ସବୁ ଦୀକ୍ଷିତ
ଜନ୍ମଭୂମି ଭାରତ, ମାତୃଭୂମି ଭାରତ । ❑

# ଝରିବ ସୁଖ ହସ



ବଡ ମଣିଷ ହେବାର ପାଇଁ
ସବୁରି ଦିନେ ସ୍ୱପ୍ନ
ସମୟ ସାଥେ ଆଗକୁ ଚାଲ
ହେବ ସପନ ପୂର୍ଣ୍ଣ ।

ମହାନ ହେବା ପାଇଁ ପହିଲେ
ବିନୟ ହୁଅ ନିତି,
ବଡ କାମକୁ କରିବା ଦିନେ
ଛୋଟରେ ରଖି ପ୍ରୀତି ।

ସବୁ କାମରେ ନ ଦେଇ ହାତ
ଏକାଗ୍ର ମନ ନେଇ
ଗୋଟେ କାମକୁ କରିବା ଶେଷ
ଖୁସିରେ ଲାଗି ତହିଁ ।

ଯଶ କୀରତି ଲାଭକୁ ଭୁଲି
କରିବା ପ୍ରତି କାମ
ସେବା ଭାବରେ କରିଲେ ତାକୁ
ଆପେ ରହିବ ନାମ ।

ଯଶ ପଛରେ ନ ଥିବା ଆମେ
ଆମ ପଛରେ ଯଶ
ଯେଉଁଠି ଯିବା ମିଳିବ ମାନ
ଝରିବ ସୁଖ ହସ । ❑

(ଅକ୍ଷର - ଜୁଲାଇ-ସେପ୍ଟେମ୍ବର ୨୦୦୭)

# ଆଲୁଅ ବତୀ



ଅନ୍ଧାର ଛାତି ଦିଏ ସେ ଚିରି
ଆଲୁଅ ଦୀପ ଜାଳି
ସୁଖ ଶାନ୍ତିର ଧାରା ଝରାଇ
ଆସିଛି ଦୀପାବଳୀ ।
ଧାଡ଼ିକି ଧାଡ଼ି ଜଳୁଛି ଦୀପ
ପ୍ରତିଟି ଘରେଘରେ
ଶୁଣାଇ ଦିଏ ଏକତା ମନ୍ତ୍ର
ଏଇ ଶୁଭ ଦିନରେ ।



କଦଳୀ ଗଛ ହେଲା‌ . ପୋତା
ଲକ୍ଷ୍ମୀ ହୋଇ ବେ ବିଜେ
ଆମ୍ବ ପତର ତୋରଣ ‌ ସେ
ଘର ଦୁଆର ଆ ଗେ ।
ରଂଗ ବେରଂଗ ମୁରୁଜ ପ
ଦିଶୁଛି ଉଜାଗର
କୁଂପି ଚକିରି ଜାଳି ପିଲାଙ୍କ
ଓଠରେ ହସ ଧାର ।
ଠାକୁର ଘରୁ ଦୁଆର ଛାତ
ସବୁଠି ଜଳେ ବତୀ
ସବୁରି ମନ ଉଠୁଛି ହସି
ଝରେ ସେନେହ ପ୍ରୀତି । ◻

(ପଶ୍ଚିମାଞ୍ଚଳ - ୦୩.୧୧.୨୦୦୪)

# ଶରତ

ଶରତ ଆସିଲା ଚାରିଆଡେ ସଫା
ନଈ ପାଣି ଝଲମଲ
ଗଛଲତା ଦେହ ଛୁଇଁ ଝରଣାଟି
ଗୀତ ଗାଏ କଳକଳ ।
ସିରି ସିରି ବାଆ ବଇଁଶୀ ବଜାଏ
ସବୁଜିମା ଧାନ କ୍ଷେତେ
ଧୋବ ଫରଫର କାଶତଣ୍ଡୀ ଫୁଲ
ଖୁସିରେ ନାଚନ୍ତି କେତେ ।





ସବୁଜିମା ଶାଢ଼ି ପିନ୍ଧିଛି ଧରଣୀ
ଫୁଲ ସାଜେ ଶାଢ଼ି ଧଡି
କାଶତଣ୍ଡୀ ଫୁଲ ତା' ଶିର ମୁକୁଟ
ଧରା ଶୋଭାଯାଏ ବଢ଼ି ।
ଗଙ୍ଗଶିଉଳିର ମହକ ଧାରରେ
ସୂରୁଯର ନିଦ ଭାଙ୍ଗେ

ରଙ୍ଗ ବେରଙ୍ଗର ପ୍ରଜାପତି ସବୁ
ଉଡୁଥାନ୍ତି ନାନା ଢ଼ଙ୍ଗେ ।

ପୋଖରୀ ଦେହରେ କଇଁ ଫୁଲ ଫୁଟି
ସବୁରି ମନକୁ ଛୁଏଁ
ଶରତ ଆସିବା ବାରତାଟି ଧିରେ
ନୀଳଗଗନକୁ ଛୁଏଁ ।
ଶରତ ଆକାଶ ଭଳି ନିରିମଳ
ହେଉ ଆମରି ଅନ୍ତର



ନିରିମଳ ହୃଦ ହେଲେ ସିନା ସଦା
ସୁଖ ବୁଣିବା ଅପାର ।
ଏ ସୁନ୍ଦର ରୂପେ ବିଭୋର ହୋଇକି
ଦେବୀ ମା ଆସନ୍ତି ଧାଇଁ
ସୁଖ ଶାନ୍ତି ଧାରା ଆଲୋକ ପସରା
ଢ଼ାଳନ୍ତି ଅଜ୍ଞାନ ଧୋଇ । ❑

(ଅନୁପମ ଭାରତ - ୮.୧୦.୨୦୦୮)

# ଶୁଭ କାମନା

ଧରଣୀ ପଠାଏ ଶୁଭର ବାରତା
ନଈ ଝରଣାର ଧାରେ
ଆକାଶ ଦେଶର ପୂରୁବ ଦିଗରୁ
ଝିଲିମିଲି ମୁରୁଜରେ ।
ବନ ଉପବନ ଫୁଲର ପାଖୁଡା
ସଜାଇ ଦେଲେଣି କେତେ
ନବ ବରଷକୁ ସ୍ୱାଗତ କରିବେ
କୋଇଲିର ମିଠାଗୀତେ ।
ପତର ଦେହରୁ ଶିଶିର ମୁକୁତା
ପଡିବାକୁ ଟିକେ ଖସି
ତରତର ହୁଏ ନବ ସ୍ୱାଗତରେ
ଓଠରେ ସୁଖର ହସି ।
ଶୁଭ କାମନାର ଆଦାନ ପ୍ରଦାନ
ନୂଆ ମନଟିଏ ନେଇ
ସବୁରି ଭିତରେ ସଞ୍ଚରିତ ହେଉ
ଭାତୃଭାବ ଶାନ୍ତି ପାଇଁ ।
ଘୃଣା ଦ୍ୱେଷ ଭାବ ଅନ୍ତରରୁ ଭୁଲି
ଏକତା ସମତା ପଥେ
ଏ ନୂଆ ବରଷ ହୋଇ ହସହସ
ନେଇ ଆସୁସୁଖ ସାଁଥେ । ❑



(ମାତୃଭାଷା - ୦୫.୦୧.୨୦୦୭)

# ଅମୃତ ସନ୍ତାନ



ସୃଷ୍ଟି କରତାଙ୍କ ଆମେ ସର୍ବଶ୍ରେଷ୍ଠ ଦାନ
ଧରାବୁକେ ସ୍ୱର୍ଗସୁଖ କରିବା ସ୍ଥାପନ
କରି ଭଲ କାମ ହେବାରେ ମହାନ
ଏ ମାଟିର ଆମେ ପରା ଅମୃତ ସନ୍ତାନ ।

ସବୁଠାରେ ଭରିଦେବା ଆନନ୍ଦ ଉଲ୍ଲାସ
ପୋଛିଯିବା ହିଂସା କ୍ରୋଧ ଅହଂକାର ଦ୍ୱେଷ
ଏଇ ଧରା ଧାମେ ସବୁ ଭୁଲିଯିବା ଆମେ
ଜାତି ଧରମରେ ବନ୍ଧା ନୁହେଁ ଆମ ମନ ।



ଏ ସାରା ଧରଣୀ ପରା ଗୋଟିଏ ଉଦ୍ୟାନ
ମହକିବା ଆମେ ସବୁ ଯେତେକ କୁସୁମ
ହସାଇବା ଦେଶେ ଆମ ପ୍ରତି ଓଠେ ହସ
ଆମରି ପରଶ ଧାରେ ସପନ ପୂରଣ ।

ଭଲ କାମେ ସହଯୋଗ କରୁଥିବା ନିତି
ଉଚ୍ଚନୀଚ ଭେଦଭାବ ନାହିଁ କାହାପ୍ରତି
ହେବାନି ଦୁର୍ବଳ କେବେ ଭାବିବା ସବଳ
ଏକତା ସମତା ପଥେ ପାଦ ପଡୁ ଆମ ।

ଯଶ ଅପଯଶ ପାଇଁ ନାହିଁ ଆମ ଭୟ
ସାରା ବିଶ୍ୱେ ସେବାକାମେ ରଖି ଆମ ଲୟ
ସମୟର ସାଥେ ଚାଲି ସଦା ସତ୍ୟପଥେ
ସମୟର ମାନ ବୁଝି କରିଯିବା କାମ । ❑

(ସୁନାଫୁଲ - ଏପ୍ରିଲ-ଜୁନ ୨୦୦୯)



**ସୁଶ୍ରୀ ସବିତା ଭୋଇ**
ଦମ୍‌କିପାଲି, ପାଟଣାଗଡ଼, ବଲାଙ୍ଗିର - ୭୬୭୦୨୫

## ସବିତା ଭୋଇଙ୍କ ପ୍ରକାଶିତ ଶିଶୁ କିଶୋର ପୁସ୍ତକ

| | |
|---|---|
| ଜନ୍ମଭୂମି | - ୧୯୯୮ |
| ଇଚିର ମିଚିର ଧୂପ ଚିରଚିର | - ୨୦୦୨ |
| ଟିକି ଟିକି ଫଉଜ | - ୨୦୦୯ |
| ସମିଆର ଚକା | - ୨୦୧୦ |